ପ୍ରଥମ ପ୍ରକାଶ
ମାର୍ଚ୍ଚ ୧୯୮୭

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗୋସ୍ୱାମୀ ପ୍ରେସ୍, ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ ଟ ୪-୦୦

AMA PARIBESHA
By Dr. Gokulananda Mohapatra
Publishers : Vidyapuri, Cuttack
Printed at Goswami Press, Alamchand Bazar, Cuttack 753002
1987

## ପଦେ ଅଧେ

ସାରା ପୃଥିବୀ ଆଜି ଏକ ବଡ଼ ବିପଦର ଦୁଆର ମୁହଁରେ ଠିଆ ହୋଇଛି । ଏ ବିପଦ ନୁହେଁ ପରମାଣୁ ଯୁଦ୍ଧ, ଏ ବିପଦ ହେଉଛି ପରିବେଶ ପ୍ରଦୂଷଣ । ଆମେ ବେପରୁଆ ଭାବରେ ପରିବେଶକୁ ଦୂଷିତ କରି ଚାଲିଛେ । ଆମ ଚାରିପାଖର ଜଳ, ସ୍ଥଳ, ବାୟୁ ଦୂଷିତ ହେବାରେ ଲାଗିଛି । ଆମେ ଆଖିବୁଜା ଗଛ କାଟି ଚାଲିଛେ । କେଉଁଠାରେ ଗଛଟିଏ ଲଗା ବି ଯାଉନି । ପରିବେଶ ଦୂଷିତ ହେବା ଫଳରେ ଆମକୁ ନାନା ପ୍ରକାର ରୋଗ ଗ୍ରାସ କରୁଛି । ଆମେ ଅଳ୍ପାୟୁ ହୋଇ ଯାଉଛୁ । ଅକାଳ ବାର୍ଦ୍ଧକ୍ୟ ଆମକୁ ଗ୍ରାସ କରୁଛି । ଅନ୍ଧାଧୂନ୍ଦା ଗଛବୃକ୍ଷ କାଟିବା ଫଳରେ ଆମ ଜଳବାୟୁ ବଦଳି ଯାଉଛି । ଆମ ପରିବେଶକୁ ଆମେ ଯଦି ରକ୍ଷା ନ କରୁ ତେବେ ଆମେ ଧ୍ୱଂସ ପାଇଯିବୁ । ଆମ ଲୋକମାନେ, ଆମ ପିଲାମାନେ ଏହା ବୁଝିବା ଉଚିତ । ପରିବେଶକୁ ଶୁଦ୍ଧ ରଖିବା ପାଇଁ ଅଧିକ ଗଛ ଲଗାଇବା ଆବଶ୍ୟକ । ଆମେ ପରମାଣୁ ଯୁଦ୍ଧରେ ଧ୍ୱଂସ ପାଇବୁ ନି । ଆମେ ଯଦି ଧ୍ୱଂସ ପାଇବୁ, ତେବେ ଏଇ ପରିବେଶ ଦୂଷିତକରଣ ଯୋଗୁଁ । ଆଗକୁ ଥିବା ବିପଦକୁ ସ୍ମରଣ କରି ଆମେ ଆମ ପରିବେଶକୁ ଠିକ୍ ରଖିବା ଉଚିତ । ପରିବେଶ ଭଲ ହେଲେ ଆମେ ଭଲ । ପରିବେଶ ଧ୍ୱଂସ ପାଇଲେ ଆମର ଧ୍ୱଂସ ।

ଇତି

ଲେଖକ



ଗଛଗୁଡ଼ିକ କାଟି ଜଙ୍ଗଲ ନଷ୍ଟ କରାହେଉଛି

# ଆମ ପରିବେଶ

ଭାଇ, ତୁମେ ଜାଣିନ, ସେଦିନ କ'ଣ ହେଲା ନା, ବାପା ଆଉ ମୁଁ ରାଧାକାନ୍ତ ମଉସାଙ୍କ ଘରକୁ ଯାଉଥିଲୁ । ବାଟରେ ଆମ ଗାଁର ବଡ଼ ଚନ୍ଦନ ପୋଖରୀ ପଡ଼ିଲା । ପୋଖରୀର ଗୋଟିଏ ପାଖରେ ଧୋବାମାନେ ଲୁଗା କାଚୁଥାନ୍ତି । ଅନ୍ୟପାଖରେ ଲୋକେ ତାଙ୍କ ଗାଈଗୋରୁଙ୍କୁ ଗାଧୋଇ ଦେଉଥାନ୍ତି । ଆଉ ଗୋଟିଏ ପାଖରେ ଆମ ଗାଁର ପିଲାଏ ଗାଧୋଉ ଥାନ୍ତି । ବାପା ଏସବୁ ଦେଖି ବିରକ୍ତ ହୋଇଗଲେ । ସେ ଧୋବାମାନଙ୍କୁ ଡାକିକହିଲେ—

'ହଇ ହେ, ଲୁଗା କାଚିବାକୁ ତୁମମାନଙ୍କୁ କ'ଣ ଆଉ କେଉଁଠି ଜାଗା ମିଳିଲାନି । ଏହି ପୋଖରୀରେ ପରା ସାହିସାରା ଲୋକେ ଚଳପ୍ରଚଳ ହେଉଛନ୍ତି । ପାଣି ପିଉଛନ୍ତି । ତୁମେମାନେ ଯଦି ଏମିତି କରିବ, ଲୋକେ କ'ଣ ଏ ପାଣିକୁ ଆଉ ବ୍ୟବହାର କରିପାରିବେ ?

ସେମାନେ ବାପାଙ୍କ କଥା ଶୁଣି ଡରରେ ଚୁପ୍‌ହୋଇ ଠିଆହୋଇ ରହିଲେ । ବାପା କହିଲେ, 'ତୁମେମାନେସବୁ ପରିବେଶକୁ ଯେମିତି ଭାବରେ ଦୂଷିତ କରୁଛ ନା, ଏହି ପୋଖରୀ ଆଉ କିଛିଦିନ ପରେ ବିଷାକ୍ତ ଜଳରେ ଭରି ହୋଇଯିବ ।



ଚନ୍ଦନ ପୋଖରୀର ଦୂଷିତ ପରିବେଶ

'ଭାଇ, ବାପା ସେଦିନ ଯାହା କହୁଥିଲେ, ପରବେଶ ଦୂଷିତ କଥା। ପରବେଶ ମାନେ କ'ଣ ?

ଆରେ, ତୁ ପରବେଶ କାହାକୁ କହନ୍ତି କ'ଣ ଜାଣିନୁ ?

'ନା, ଭାଇ, ଜାଣିଥିଲେ ପଚାରନ୍ତି କାହିଁକି ?'

ଆରେ ଦେଖ୍, ଆମେ ପ୍ରତିଦିନ ଜୀବନରେ ବହୁ ପଦାର୍ଥ ସଂପର୍କରେ ଆସୁଛୁ। ସେଗୁଡ଼ିକୁ ନେଇ ଆମେ ଚଳୁଛୁ। ସେଗୁଡ଼ିକ ଆମ ଚାରିପାଖରେ ଆମକୁ ଘେରି ରହିଛନ୍ତି । ତାହାହିଁ ହେଉଛି ଆମ ପରବେଶ । ଆମ ଚାରିପାଖରେ ଯେଉଁ ବାୟୁ, ଜଳ, ଭୂମି, ଗଛବୃକ୍ଷ ସବୁ ରହିଛି, ଯା'ଭିତରେ ଆମେ ଆତଜାତ ହେଉଛୁ ତାହାହିଁ ଆମ ପରବେଶ । ପରବେଶକୁ ନେଇ ଆମେ, ଆମକୁ ନେଇ ପରବେଶ। ଏଥର ବୁଝିଲୁ, ପରବେଶର ଅର୍ଥ କ'ଣ ?

ହଁ, ବୁଝିଲି ଯେ, ତେବେ— ?

ପୁଣି ତେବେ କ'ଣ ?

ତେବେ ପରବେଶ ଦୂଷିତ କାରଣ କଅଣ ?

'ଆରେ, ତୁ ଦେଖିଲୁପରା, ଆମ ଚନ୍ଦନ ପୋଖରୀ ପାଣିକୁ ଲୋକମାନେ କେମିତି ଦୂଷିତ କରିପକାଉଛନ୍ତି । ପୋଖରୀରେ ଗାଈ, ବଳଦ ଗାଧେଇଲେ, ଧୋବାମାନେ ଲୁଗା କାଚିଲେ, ସେ ପାଣି କ'ଣ ଦୂଷିତ ନ ହୋଇ ରହିବ ? ସେ ପାଣିକୁ ଆଉ ପିଇ ହେବ ? ସେହିଭଳି, ଲୋକେ ପଡ଼ିଆରେ ଝାଡ଼ା ଫେରୁଛନ୍ତି। ସେ ମାଟି ଆଉ ତା ଉପରେ ଥିବା ବାୟୁ କ'ଣ ଦୂଷିତ ହେଉନି ? ମଇଳା ଗନ୍ଧ ଚାରିଆଡ଼କୁ ବ୍ୟାପି ଯାଉଛି । ଏହା ଫଳରେ ଆମ ଚାରିପାଖର ଜଳ, ବାୟୁ, ଭୂମି ଦୂଷିତ ହୋଇ ଯାଉଛି। ଏହାକୁ କହନ୍ତି ପରବେଶ ଦୂଷିତ-

କରଣ । ଆମର ଯେତେ ଅଧିକ ରୋଗ, ବ୍ୟାଧି ତାହା ଏହି ଦୂଷିତ ପରିବେଶ ଯୋଗୁଁ ।

ଲୋକେ ତ ପଡ଼ିଆରେ ଝାଡ଼ା ଫେରିବେ । ଅନ୍ୟ ଉପାୟ ତ ନାହିଁ । ଆମେ ସେ ଦୂଷିତ କାରଣକୁ ବନ୍ଦକରିବା କେମିତି ?

'କାହିଁକି ?, ଲୋକେ ଯଦି ପାଇଖାନା କରି ଝାଡ଼ା ଫେରନ୍ତେ, ତେବେ ପଡ଼ିଆରେ ଝାଡ଼ା ଫେରିବା ଦରକାର ହୁଅନ୍ତା ନି । ତେଣୁ ବାୟୁ କାହିଁକି ଦୂଷିତ ହୁଅନ୍ତା ?

ଆମ ଗାଁର ଲୋକେ ତ ଗରିବ, ସେମାନେ କ'ଣ ପାଇଖାନା କରି ପାରିବେ ?

ହେଲେ ଗୋଟିଏ ଖାତ କରି ଯଦି ଝାଡ଼ା ଫେରନ୍ତେ, ତେବେ ହୁଅନ୍ତା । ବାୟୁ ଏତେ ଦୂଷିତ ହୁଅନ୍ତା ନି । ଝାଡ଼ା ଫେରିସାରି ମାଟିରେ ଢାଙ୍କି ଦିଅନ୍ତେ । କିଛିଦିନ ପରେ ସିଏ ଖତ ହୋଇଯାନ୍ତା ।

## ବାୟୁମଣ୍ଡଳ କିପରି ଦୂଷିତ ହେଉଛି

ଏହି ଝାଡ଼ା ଫେରିବା ଯୋଗୁଁ କ'ଣ ଆମ ବାୟୁଖାଲି ଦୂଷିତ ହେଉଛି କି ? 'ନା, ସିଏ ହେଲି ଗୋଟିଏ କାରଣ । ଆଉ ଗୋଟିଏ କାରଣ ହେଉଛି, ଆମ ଅଳିଆ ଗଦା, ଗୋବର ଗଦା । ଆମେ ଗୁହାଳ ଗୋବର, ଘରର ଅଳିଆ ବାହାରେ ଗଦା କରି ଦେଉଛୁଁ । ସେଥିରୁ ନାନା ଦୁର୍ଗନ୍ଧ ବାହାରି ଚାରିଆଡ଼ ଦୂଷିତ କରିପକାଉଛି । ଏଥିରେ ବାୟୁ ଦୂଷିତ ହେଉଛି, ଭୂଇଁ ମଧ୍ୟ ଦୂଷିତ ହେଉଛି । ଆମେ ଚୁଲୀ ଜାଳି ଭାତ ରାନ୍ଧୁଛୁ । ଏଥିରୁ ଧୂଆଁ ବାହାରି ବାୟୁକୁ ମଧ୍ୟ ଦୂଷିତ କରୁଛି । ତୁ କ'ଣ ଭାବୁଛୁ ମଣ୍ଟୁ, ଖାଲି ଆମ ଗାଁବାୟୁ ଦୂଷିତ ହେଉଛି । ନା, ସହର ବାୟୁ ମଧ୍ୟ ଦୂଷିତ ହେଉଛି ।

'କେମିତି ଭାଇ, ସେଠିତ ଲୋକେ ପାଇଖାନାରେ ଝାଡ଼ା ଫେରୁଛନ୍ତି, କଳ ପାଣି ପିଉଛନ୍ତି । ସେମାନଙ୍କ ସ୍ୱାସ୍ଥ୍ୟ ବି ଭଲ ଅଛି, ତ ପରିଷ୍କାର ପରିଛନ୍ନ, ନିତ ଓଳା ହେଉଛି । ସେଠି ବାୟୁ କେମିତି ଦୂଷିତ ହେଉଛି ?'

'ଆରେ, ସେଠି ହରବଖତ, କେତେ ଗାଡ଼ି, ଘୋଡ଼ା, ମଟର ସବୁ ଯା ଆସ କରୁଛି ଦେଖୁନୁ । ସେଥିରୁ ଯେଉଁ ଦୂଷିତ ଧୂଳି, ଧୂଆଁ ବାହାରୁଛି, ସେସବୁ ସେଠା ବାୟୁକୁ ଦୂଷିତ କରିପକାଉଛି । ସେଠି ବଡ଼ ବଡ଼ ନାଳ ନର୍ଦ୍ଦମା ଅଛି । ସେଥିରୁ ଗନ୍ଧ ଗ୍ୟାସ ସବୁ ବାହାରୁଛି । ସେସବୁ ସେଠା ବାୟୁକୁ ଦୂଷିତ କରୁଛି ।

ମଟରଗାଡ଼ିରୁ ଯେଉଁ ଗ୍ୟାସ ବାହାରୁଛି, ସେ କ'ଣ ବିଷାକ୍ତ ?

ଆରେ, କ'ଣ କହିବାକୁ ଅଛି । ସେ ଗ୍ୟାସ ପରା ଭାରି ବିଷାକ୍ତ । ମଟରଗାଡ଼ି ଧୂଆଁରେ କାର୍ବନ ମନକ୍ସାଇଡ଼, ଅଙ୍ଗାରକାମ୍ଳ ଆଦି ବିଷାକ୍ତ ଗ୍ୟାସ ରହିଛି । ସେସବୁ ଗ୍ୟାସ ମଣିଷ ପାଇଁ ବିଷାକ୍ତ । ନାନା ପ୍ରକାର ରୋଗ ସୃଷ୍ଟି ମୂଳରେ ଏହି ଗ୍ୟାସ ।

ଆମେ ବି ତ ଭାଇ, ନିଶ୍ୱାସରେ ଅଙ୍ଗାରକାମ୍ଳ ଛାଡ଼ୁଁ ।

ହଁ, ଆମେ ବି ବାୟୁମଣ୍ଡଳକୁ ବିଷାକ୍ତ କରୁଛୁଁ । ଗୋଟିଏ ମଟରଗାଡ଼ି ମିନିଟକରେ ଯେତିକି ଅଙ୍ଗାରକାମ୍ଳ ଛାଡ଼ୁଛି, ଦେଢ଼ହଜାର ଲୋକ ମିନିଟରେ ସେତିକି ଛାଡ଼ୁଥିବେ କି ନାହିଁ ସନ୍ଦେହ । ଆମେ ରାନ୍ଧିଲା ବେଳେ ଯେଉଁ କାଠ, କୋଇଲା ଜାଳୁଛୁଁ, ସେଥିରୁ ମଧ୍ୟ ଢେର ଅଙ୍ଗାରକାମ୍ଳ ବାହାରୁଛି । ରେଳଗାଡ଼ି ଧୂଆଁ ମଧ୍ୟ ସେମିତି କେତେ ବିଷାକ୍ତ ଗ୍ୟାସରେ ପୂର୍ଣ୍ଣ । କଳକାରଖାନାର ଧୂଆଁ ମଧ୍ୟ କେତେ ବିଷାକ୍ତ ଗ୍ୟାସ ଛାଡ଼ୁଛି ।

ମଟରଗାଡ଼ି ତ ରହିବ । ରେଲଗାଡ଼ି ତ ରହିବ । ଆମେ ତ ଚୁଲ୍ଲୀରେ ରନ୍ଧାବଢ଼ା କରିବା । ନ ହେଲେ ଚଳିପାରିବା ନାହିଁ । ତେବେ ଏହି ଯେଉଁ ଦୂଷିତ ହେଉଛି, ତାହା ବନ୍ଦହେବ କେମିତି ?

'ଗାଁମାନଙ୍କରେ ମଟରଗାଡ଼ି କି ରେଲଗାଡ଼ି ବାୟୁକୁ ସେତେ ଦୂଷିତ କରିପାରନ୍ତି ନି । କାହିଁକି ନା, ଗାଁ ମାନଙ୍କରେ ମୁକ୍ତବାୟୁର ପରିମାଣ ବେଶି । ସହରମାନଙ୍କରେ ଲୋକମାନେ ତ ଖୁନ୍ଦାଖୁନ୍ଦିହୋଇ ଥାନ୍ତି । ସେଠି ବାୟୁ ପରିମାଣ କମ୍ । ତେଣୁ ବାୟୁ ସେଠାରେ ଅଧିକ ଦୂଷିତ ହେବା ସମ୍ଭାବନା ।

'ତା ହେଲେ ଆମେ କ'ଣ କରିବା ?'

'ସହରମାନଙ୍କରେ ମଟର, ଟ୍ରକ୍ ଆଦିକୁ ଚଳାଚଳ କରିବାକୁ ଦେବାନି ।'

ତା ହେଲେ ଲୋକେ ଯିବା ଆସିବା କରିବେ କେମିତି ?

'ସେଠି ଇଲେକ୍‌ଟ୍ରିକ୍ କାର, ଟ୍ରାମ୍, ବସ୍, ଭୂଇଁତଳେ ଇଲେକ୍‌ଟ୍ରିକ୍ ଟ୍ରେନ୍ ଚଳାଇବାକୁ ପଡ଼ିବ । ସେଥିରେ ଲୋକେ ଯା ଆସ କରିବେ । ମଟର, ଟ୍ରକ ସବୁ ସହର ବାହାରେ ଅଟକିବ ।'

'ନାଳ, ନର୍ଦ୍ଦମାକୁ ପୁଣି କ'ଣ କରିବା ?'

ଖୋଲା ନାଳ, ନର୍ଦ୍ଦମା ନ କରି ଆବଦ୍ଧ ନଳା କରିବାକୁ ପଡ଼ିବ । ଲୋକେ ବାହାରେ ଯେମିତି ଝାଡ଼ା ପରିସ୍ରା ନ କରନ୍ତି, ସେମାନଙ୍କୁ ବୁଝାଇବାକୁ ପଡ଼ିବ । କଡ଼ା ଆଇନ କରିବାକୁ ପଡ଼ିବ । କୋଇଲା, କାଠ ଯାଗାରେ ଇଲେକ୍‌ଟ୍ରିକ୍, ବା ରନ୍ଧନ ଗ୍ୟାସରେ ରନ୍ଧାରନ୍ଧି କରିବାକୁ ପଡ଼ିବ ।

'ଭାଇ, ସେଦିନ ଆଈ କହୁଥିଲେ, ଆଜିକାଲି କାଳେ ଆଗଭଳି ଶୀତ ହେଉନି । ଏହା କ'ଣ ସତ ?'

'ହଁ, ସତ ।'

'କାହିଁକି ଭାଇ ?'

'ବାୟୁରେ ଅଙ୍ଗାରକାମ୍ଳର ପରିମାଣ ବଢ଼ି ଯାଉଛି ବୋଲି । ଆଗ କାଳରେ ଆମ ବାୟୁମଣ୍ଡଳରେ ଆଜିକାଲିକା ଭଳି ଏତେ ଅଙ୍ଗାରକାମ୍ଳ ନଥିଲି । ଏହି ଅଙ୍ଗାରକାମ୍ଳ ବଢ଼ିଯାଉଛି ବୋଲି ଥଣ୍ଡା କମିଯାଉଛି । ବାୟୁ ଦୂଷିତ କରିଣର ଏହା ଏକ ପ୍ରଭାବ ।'

'କାହିଁକି ବଢ଼ିଯାଉଛି ଭାଇ', ଆଗକାଳରେ ବଢ଼ିଯାଉ ନ ଥିଲି, ଆଜିକାଲି ବଢ଼ିଯାଉଛି କାହିଁକି ?

'ଆମର, ଆଗକାଳରେ ଆଜିକାଲିକା ଭଳି ଏତେଲୋକ ନ ଥିଲେ । ଆଗକାଳରେ ଯେତେ ଗଛ ଥିଲି, ଆଜିକାଲି ସେତେ ଗଛ ନାହିଁ । ଲୋକେ ବଢ଼ି ଯାଉଛନ୍ତି, ଗଛ କମି ଯାଉଛି ବୋଲି ଆମ ଆକାଶ ମଣ୍ଡଳରେ ଅଙ୍ଗାରକାମ୍ଳ ଗ୍ୟାସ୍‌ର ପରିମାଣ ବଢ଼ିଯାଉଛି । ଲୋକେ ଯଦି ଆଖିବୁଜା ଗଛ କାଟି ପକାଇବେ, ତେବେ ଏହି ପରିମାଣ ବଢ଼ିବ ନାହିଁ ତ ଆଉ କ'ଣ ହେବ ?

'ଏମିତ କାହିଁକି ହେଉଛି, ଭାଇ ?'

ତୁ ଜାଣିନୁ ମଣ୍ଟୁ, ଆମେ ଯେଉଁ ଅଙ୍ଗାରକାମ୍ଳ ନିଃଶ୍ୱାସରେ ଛାଡ଼ୁଁ, ତାକୁ ଗଛ ଗ୍ରହଣ କରି ଅମ୍ଳଜାନ ଗ୍ୟାସ୍ ଛାଡ଼େ । ଆମେ ପୁଣି ସେ ଅମ୍ଳଜାନକୁ ନିଃଶ୍ୱାସରେ ନେଉ । ଗଛ ଯଦି କମିଯିବ, ଲୋକେ ଯଦି ବଢ଼ିଯିବେ, ତେବେ ଅଙ୍ଗାରକାମ୍ଳ ପରିମାଣ ବଢ଼ିଯିବ । ଏହାରି ଯୋଗୁଁ ଆଜିକାଲି ଶୀତଦିନେ ଥଣ୍ଡା ହେଉନି, ଗରମଦିନେ ଅଧିକ ଗରମ ହେଉଛି ।



ଅଧିକ ଗଛ କାଟିଲେ ବାୟୁମଣ୍ଡଳ ଦୂଷିତ ହୁଏ

'ତା ହେଲେ ଆମେ ଏଥିରୁ କେମିତି ରକ୍ଷା ପାଇବା ?'

'ଅଧିକ ଗଛ ଲଗାଇଲେ ଓ ବଣଜଙ୍ଗଲ ସବୁ ନ କାଟିଲେ ।

ସମସ୍ତେ ସମସ୍ତଙ୍କ ବାଡ଼ି ବଗିଚାରେ ଗଛ ଲଗାଇବେ । ରାସ୍ତା ଘାଟରେ ଗଛସବୁ ଲଗାଇବେ । ବଣରେ ଗଛ ଲଗାଇବେ । ଗଛ ସଂଖ୍ୟା ବଢ଼ିଲେ ଅଙ୍ଗାରକାମ୍ଳ ପରିମାଣ କମିଯିବ । ବାୟୁରେ ଆଉ ଯେଉଁ ଦୂଷିତ ଗ୍ୟାସ୍‌ସବୁ ମିଶୁଛି, ସେସବୁକୁ ମଧ୍ୟ ଗଛର ପତ୍ର ଶୋଷିନେଇ ବାୟୁକୁ ଶୋଧନ କରିଦେବ । ଆଗଭଳି ଶୀତ ଦିନେ ଭଲ ଶୀତ ହେବ । ଗରମ ଦିନେ କମ୍ ଗରମ ହେବ । ବର୍ଷା ଦିନେ ମଧ୍ୟ ଭଲ ବର୍ଷା ହେବ । ଏହି ଦୂଷିତବାୟୁ ଯୋଗୁଁ ହେଉଥିବା ରୋଗସବୁ କମିଯିବ । ଆମେ ଭଲରେ ରହିପାରିବା ।

## ଜଳ ଦୂଷିତ ହୁଏ କେମିତି ?

'ଭାଇ, ଗୋଟିଏ କଥା ପଚାରିବି କହିବ ? ତୁମେ ସେଦିନ କହୁଥିଲ, ଆମ ବାୟୁମଣ୍ଡଳ ଦୂଷିତ ହୋଇଯାଉଛି । ବାୟୁମଣ୍ଡଳ ଯେଉଁ ପରିମାଣରେ ଦୂଷିତ ହେଉଛି, ଜଳ କ'ଣ ସେହି ପରିମାଣରେ ଦୂଷିତ ହେଉଛି ?'

'ହଁ, ତୁ ପରା ନିଜେ ସେଦିନ ଦେଖିଲୁ, ଚନ୍ଦନ ପୋଖରୀରେ । ଆମ ଲୋକମାନେ କିଛି ଜାଣି ନ ଥିବାରୁ ସେମାନେ ପୋଖରୀ ଜଳକୁ ଦୂଷିତ କରି ପକାଉଛନ୍ତି । ନଦୀ ଜଳ ମଧ୍ୟ ସେଇଆ । ତେବେ ନଦୀ ଜଳ ବହିଯାଉ ଥିବାରୁ ଏହା କମ୍ ଦୂଷିତ ହୁଏ ।'

'କୂଅ ଜଳ ତ ଭାଇ ଦୂଷିତ ହେଉ ନ ଥିବ ?'

'ନା, କୂଅ ଜଳ ବି ଦୂଷିତ ହେଉଛି ।'

କେମିତି ? କୂଅରେ ତ କେହି ଗାଧୋଉ ନାହାନ୍ତି । କୂଅ ଜଳ କେମିତି ଦୂଷିତ ହେଉଛି ।

ତୁ ଗଲୁ, ଦେଖିବୁ, ଆମ ମହାଦେବ ମନ୍ଦିର ପାଖରେ ଯେଉଁ କୂଅ ଅଛି, ତା' ଜଳ କେମିତି ଦୂଷିତ ହେଉଛି । ସେହି କୂଅରୁ ଲୋକେ ପାଣି ଆଣି ପିଉଛନ୍ତି । ତୁ ଦେଖିବୁ, କୂଅ ପାଖ ଚଉତରାରେ ଲୋକେ ପାଣିଢାଳ ଗାଧୋଉଛନ୍ତି । ସେହି ଗାଧୁଆ ପାଣି କୂଅରେ ପଡ଼ୁଛି । କୂଅପାଣି କେମିତି ଦୂଷିତ ନ ହେବ ! ଲୋକମାନେ ଯେଖା ଘରର ବାଲ୍ଟି, ମାଠିଆ କୂଅରେ ପକାଇ ପାଣି କାଢ଼ୁଛନ୍ତି । ସେସବୁ ତ ପରିଷ୍କାର ପରିଚ୍ଛନ୍ନ ନୁହେଁ । କାହା ଘରେ କ'ଣ ରୋଗ ବା ବ୍ୟାଧି ଥିବ । ତହିଁର ଜୀବାଣୁ ଯଦି ଏଥିରେ ଲାଗିଥାଏ, ତେବେ କୂଅ ଜଳ ଦୂଷିତ ହେଲା ।

'ତା ହେଲେ କ'ଣ କରାଯିବ ଭାଇ ?'

କୂଅରେ ସମସ୍ତଙ୍କ ବାଲ୍ଟି କି ମାଠିଆ ପଶିବା କଥା ନୁହେଁ । କୂଅ ପାଖରେ ଗୋଟିଏ ବାଲ୍ଟି ଥିବ, ସେଇ ବାଲ୍ଟିରେ ସମସ୍ତେ ପାଣି କାଢ଼ି ନିଜ ନିଜ ମାଠିଆ, ବାଲ୍ଟିରେ ପୂରାଇ ନିଜ ନିଜ ଘରକୁ ନେବେ । କୂଅମୂଳ ଚଉତରାରେ କାହାକୁ ଗାଧୋଇବାକୁ ଦିଆଯିବ ନାହିଁ । ଲୁଗାପଟା କି ବାସନ କୁସନ କୂଅ ମୂଳରେ ସଫା କରାଯିବନି । କୂଅ ମାଟିରେ ତିଆରି ନ ହୋଇ ପକ୍କା ହୋଇ ତିଆରି ହେବା ଭଲ । ଏସବୁ କଲେ ଯାଇ କୂଅ ଜଳ ଭଲ ରହିବ ।

'ତୁମେ କହୁଥିଲ ପରା ନଦୀଜଳ ପୋଖରୀ ଜଳଭଳି ସହଜରେ ଦୂଷିତ ହୁଏନି । ତେବେ ନଦୀଜଳ କଣ କିଛି ପରିମାଣରେ ଦୂଷିତ ହୁଏ ?'

ହଁ ନଦୀଜଳ ଦୂଷିତ ହୁଏ । ଆମ ଲୋକେ ଯଦି ସାବଧାନ ନ ହେବେ, ନଦୀଜଳ ଦୂଷିତ ହୋଇଯିବ । ଗାଁ ଓ ସହରରେ ରୋଗ ମହାମାରୀ ଲାଗିପାରେ । ଲୋକେ ଯଦି ରୋଗୀର ମଇଳା ଲୁଗା ନେଇ ନଈରେ ଧୋଇବେ, ନଈଜଳ



କାରଖାନାର ଦୂଷିତ ଜଳ ନଦୀଜଳରେ ମିଶୁଛି

ଦୂଷିତ ହୋଇଯିବ । ବଡ଼ ବଡ଼ ସହରରେ ନାଳ ନର୍ଦ୍ଦମାର ଦୂଷିତ ଜଳ ନଈ ଭିତରକୁ ଛାଡ଼ିଦିଅନ୍ତି । ନଈ କୂଳରେ କଳକାରଖାନା ଥିଲେ, ସେସବୁ କଳ-କାରଖାନାର ଦୂଷିତ ଜଳ ନଈକୁ ଛାଡ଼ି ଦିଅନ୍ତି । ଏହା ଫଳରେ ନଦୀଜଳ ଦୂଷିତ ହୋଇଯାଏ ।

'ହଁ, ସେଇଥି ପାଇଁ ବୋଧେ ଭାଇ ଗଙ୍ଗାପାଣି ଦୂଷିତ ହୋଇଯାଉଛି ।' ଗଙ୍ଗାପାଣି କେତେ ପବିତ୍ର, କିନ୍ତୁ ବୈଜ୍ଞାନିକମାନେ କହୁଛନ୍ତି, ବର୍ତ୍ତମାନ ଗଙ୍ଗାପାଣି ଖୁବ୍ ଅଶୁଦ୍ଧ, ଅପବିତ୍ର ।

'ସେଇଥିପାଇଁ ପରା ଭାରତ ସରକାର ଗଙ୍ଗା ପରିଶୋଧନ ଯୋଜନା ଆରମ୍ଭ କରିଛନ୍ତି ।'

'ଗଙ୍ଗାନଦୀ ହିମାଳୟରୁ ବାହାରିଲାବେଳେ ଏହାର ଜଳ ତ ଦୂଷିତ ନୂହେଁ ଭାଇ ?'

'ନା, ହିମାଳୟରୁ ବାହାରିଲା ବେଳେ ଏହା ବେଶ୍ ଶୁଦ୍ଧ ଓ ପବିତ୍ର ଥାଏ । ହରିଦ୍ୱାର ପାଖରୁ ଗଙ୍ଗାଜଳ ଦୂଷିତ ହେବା ଆରମ୍ଭ କରେ । ଗଙ୍ଗା କୂଳରେ କାନପୁର, ଏଲାହାବାଦ, ବନାରସ, ପାଟନା, କଲିକତା ଭଳି ଖୁବ୍ ବଡ଼ ବଡ଼ ସହର ଓ ଅସଂଖ୍ୟ କଳକାରଖାନା ରହିଛି । ଏହି ସବୁ ସହରର ଦୂଷିତ ପାଣି ଓ କଳକାରଖାନାର ଦୂଷିତ ଜଳ ଗଙ୍ଗା ନଦୀକୁ ଛାଡ଼ି ଦେଉଛନ୍ତି । ସେ ପରିସ୍ଥିତିରେ ଗଙ୍ଗା ଜଳ ଦୂଷିତ ନ ହେବ କେମିତି ?'

ଏ ସବୁ ସହର କି କଳକାରଖାନା ସବୁକୁ ଗଙ୍ଗାନଦୀ କୂଳରୁ ଉଠାଇ ହେବ କି ? ତେବେ ଗଙ୍ଗାର ଦୂଷିତ ପରିବେଶକୁ ରୋକାଯିବ କେମିତି ? ଆମେ ଯଦି ସବୁ କଳକାରଖାନାକୁ ବାଧ୍ୟ କରିବା, ସେମାନେ ଯନ୍ତ୍ର ବସାଇ ସେମାନଙ୍କ ଦୂଷିତ ଜଳକୁ ଆଗ ଶୋଧନ କରନ୍ତୁ, ତା ପରେ ଯାଇ ସେ ଜଳକୁ ନଦୀକୁ

ଛାଡ଼ିବେ । ତେବେ ଯାଇ ଗଙ୍ଗାଜଳ ପ୍ରଦୂଷଣ ବନ୍ଦ ହେବ । ଗଙ୍ଗା କୂଳରେ ଯେଉଁ ସବୁ ସହର ଅଛି, ଆମେ ସେମାନଙ୍କୁ କହିବା, ସେମାନେ ଆଗ ବିଭିନ୍ନ ଉପାୟରେ ସେମାନଙ୍କ ନର୍ଦ୍ଦମା ପାଣିକୁ ଶୋଧନ କରନ୍ତୁ । ତା'ପରେ ଯାଇ ନଈକୁ ଛାଡ଼ିବେ ।'

'ଏହା କ'ଣ ସମ୍ଭବ ଭାଇ ?'

ହଁ, ସମ୍ଭବ ହେବନି କାହିଁକି ?

ତା'ହେଲେ ସେମାନେ କରୁନାହାନ୍ତି କାହିଁକି ?

ତା କଲେ ସେମାନଙ୍କୁ ବହୁତ ଅଧିକ ପଇସା ଖରଚ କରିବାକୁ ପଡ଼ିବ । ନାଳ ନର୍ଦ୍ଦମା ଜଳକୁ ଶୋଧନ କରିବା କମ୍ ଖର୍ଚ୍ଚାନ୍ତକଜନକ, ନୁହେଁ । ତେଣୁ ଏତେ ଖର୍ଚ୍ଚକୁ କିଏ ଯାଉଛି ? ନଦୀ ଭିତରକୁ ଛାଡ଼ିଦେଲେ ଗଲା । କିନ୍ତୁ ସେମାନେ ଭୁଲି ଯାଉଛନ୍ତି ଯେ ସେହି ଜଳକୁ କେତେଲୋକ ପାନୀୟ ଭାବରେ ବ୍ୟବହାର କରୁଛନ୍ତି । କେତେଲୋକ ପବିତ୍ର ଗଙ୍ଗାନଦୀରେ ସ୍ନାନ କରୁଛନ୍ତି । ଏସବୁ ଦୂଷିତଜଳ ଯଦି ପବିତ୍ର ଗଙ୍ଗାଜଳରେ ମିଶେ, ତେବେ ଲୋକମାନେ ରୋଗରୁ କଷ୍ଟ ପାଇବା ହିଁ ସାର ହେବ । ଗଙ୍ଗାସ୍ନାନର ପୁଣ୍ୟ କେହି ପାଇପାରିବେ ନାହିଁ ।

'ଆମ ଲୋକେ ଯଦି ସେତକ ବୁଝିଥାନ୍ତେ, ତେବେ ଆମ ଅବସ୍ଥା ଆଜି ଏତେ ଖରାପ ହୋଇ ନ ଥାନ୍ତା । ଆମ ଚାରିଆଡ଼ ଏତେ ଦୂଷିତ ହୋଇ ଆମ ଜୀବନକୁ ସଂକଟାପନ୍ନ କରୁ ନ ଥାନ୍ତା । ଆରେ, ଗଙ୍ଗାଜଳ କ'ଣ ଖାଲି ସେତିକରେ ଦୂଷିତ ହେଉଛି । ଲୋକେ ମଲାମଣିଷକୁ ଗଙ୍ଗା ନଦୀରେ ପୋପାଡ଼ି ଦେଉଛନ୍ତି । କ'ଣ ନା ସେ ଲୋକ ମୃତ୍ୟୁପରେ ସ୍ୱର୍ଗଗାମୀ ହେବ । କି ବିରାଟ ଅନ୍ଧ ବିଶ୍ୱାସ !

'ହଁ, ସତରେ ଭାଇ, ସେଦିନ ବାପା କହୁଥିଲେ, ସେ ଗଲାମାସରେ ଯେତେବେଳେ ବନାରସ ଯାଇଥିଲେ, ସେ ଦେଖିଲେ ଯେ ଗଙ୍ଗା ନଈରେ ଗୋଟାଏ ମଲାଗୋରୁ ଭାସୁଛି । ଏହାର ଗୋଟାସାରା ଦେହ ପଚି ଯାଇଛି । କେହି ତାକୁ ଗଙ୍ଗା ନଦୀରୁ ବାହାର କରୁନାହାନ୍ତି । ଲୋକେ ସେହି ଗନ୍ଧରେ ସେଇଠି ଗାଧୋଉଛନ୍ତି ।'

'ଏଇଟା ଖାଲି ଆମ ଗଙ୍ଗାନଦୀ ପାଇଁ ନୁହେଁ । ଆମ ଦେଶର ଅନ୍ୟ ବହୁତେ ସବୁ ନଈର ଅବସ୍ଥା ସେଇଆ । ତୁମେ ଦେଖିବ ବହୁ ସହରର କଳକାରଖାନା ନଦୀକୂଳରେ ଗଢ଼ି ଉଠୁଛି । ସେସବୁ ସହର ଓ କଳକାରଖାନାର ଦୂଷିତ ପାଣି ସେହିସବୁ ନଈରେ ମିଶୁଛି । ତେଣୁ ଆମ ଦେଶର କୌଣସି ନଈର ପାଣି ଆଉ ଦୂଷିତ ନ ହୋଇ ରହିନି ।

'ହ୍ରଦ ପାଣି କି ସମୁଦ୍ର ପାଣି କ'ଣ ଦୂଷିତ ହେଉଛି ?'

'ହଁ, ସେସବୁ ବାଦ୍ ଯିବ କାହିଁକି ? ଯେଉଁସବୁ ହ୍ରଦ କୂଳରେ ବଡ଼ବଡ଼ ସହର କି କଳକାରଖାନା ଗଢ଼ି ଉଠିଛି, ସେସବୁ ସହର ଓ କଳକାରଖାନାର ମଇଳା ପାଣି ସେଥିରେ ମିଶୁଛି । ସମୁଦ୍ରରେ ମଧ୍ୟ ସେଇଆ । ସମୁଦ୍ର ପାଣି ଦୂଷିତ ହେବାରୁ ମାଛମାନେ ମଧ୍ୟ ମରି ଯାଉଛନ୍ତି ।

## ପରିବେଶ ଦୂଷିତ ହେଲେ ଆମର କ'ଣ କ୍ଷତି ହୁଏ

'ତୁମେ ଜାଣିଛ ଭାଇ, ଆମ ପାଖ ଗାଁ ଦନେଇପୁରରେ ଝାଡ଼ାବାନ୍ତି ଲାଗିଛି । ଲୋକେ ମଶାମାଛି ଭଳି ମରି ଯାଉଛନ୍ତି ।'

'ଆଁ, ଦନେଇପୁରରେ କଲେରା ଲାଗିଛି ? ତୋତେ କିଏ କହିଲା ?'

ବୋଉ କହୁଥିଲା, କଲେରା ଇଞ୍ଜେକସନ ଆମ ଗାଁରେ ଦିଆଯାଉଛି । ଆମ ଘରକୁ ଆଜି ଆସିବ, ଦେବାପାଇଁ ।

ତୁ ଜାଣିଛୁ, ମଣ୍ଟୁ ଏହି କଲେରା ଲାଗିବାଟା ପରିବେଶ ଦୂଷିତକରଣର ଏକ ସାକ୍ଷୀ । ଆମେ ଜଳକୁ ଦୂଷିତ କଲେ କଲେରା ରୋଗ ବ୍ୟାପେ । ଦନେଇପୁରରେ ଯେତେବେଳେ କଲେରା ଆରମ୍ଭ ହେଲା, ସେଠା ଲୋକେ ଯଦି ରୋଗୀର ଲୁଗାପଟା, ମଳମୂତ୍ର ପୋଖରୀରେ ସଫାକରି ନ ଥାନ୍ତେ, କୂଅ, ପୋଖରୀର ଜଳକୁ ବିଶୋଧନ କରିଥାନ୍ତେ, ତେବେ କଲେରା ବ୍ୟାପି ନ ଥାନ୍ତା । ଆମ ଲୋକେ ତ ଜଳ ଦୂଷିତ ହେବା କଥା ଜାଣୁ ନାହାନ୍ତି । ତେଣୁ ରୋଗ ବ୍ୟାପି ଯାଇଛି । ଲୋକେ ମରି ଯାଉଛନ୍ତି ।

ପରିବେଶ ଦୂଷିତ ହେଲେ ଆଉ କ'ଣ କ'ଣ ରୋଗ ହୁଏ ଭାଇ ?

ଆରେ, କ'ଣ ଗୋଟେ ଦି'ଟା ରୋଗ, ଶହ ଶହ ପ୍ରକାର ରୋଗ ହୁଏ । ଏହି ପରିବେଶ ଦୂଷିତକରଣରୁ କଲେରା, ଟାଇଫଏଡ୍, ବସନ୍ତ, ମିଳିମିଳା ଠାରୁ ଆରମ୍ଭ କରି କର୍କଟ ରୋଗ ପର୍ଯ୍ୟନ୍ତ ସବୁର ମୂଳ ଏହି ପରିବେଶ ପ୍ରଦୁଷଣ ।

'କର୍କଟ ରୋଗ କ'ଣ ପରିବେଶ ଦୂଷିତ କରଣ ଯୋଗୁଁ ହୁଏ ?'

ହଁ, ବୈଜ୍ଞାନିକମାନେ କହୁଛନ୍ତି, ଆଗକାଳ ଅପେକ୍ଷା ଆଜିକାଲି କର୍କଟ ରୋଗୀ ସଂଖ୍ୟା ବଢ଼ି ଯାଇଛି । ଖାଲି ଆମ ଦେଶରେ କାହିଁକି ପୃଥିବୀର ସବୁ ଦେଶରେ କର୍କଟ ରୋଗୀଙ୍କ ସଂଖ୍ୟା ମଧ୍ୟ ବଢ଼ିଛି । ଆମ ଲୋକେ ସିଗାରେଟ ଖାଇ ଧୂଆଁ ଛାଡ଼ୁଛନ୍ତି, ସେହି ଧୂଆଁ ପାଖରେ ବସିଥିବା ଲୋକଙ୍କ ପ୍ରଶ୍ୱାସରେ ସେମାନଙ୍କ ଦେହ ଭିତରକୁ ଯାଉଛି । ଏହା ଫଳରେ ସିଗାରେଟ ନ ଖାଇଲେ ମଧ୍ୟ କର୍କଟ ରୋଗ ହେବା ସମ୍ଭାବନା । କଳକାରଖାନାର ଧୂଆଁ, ମଟରଗାଡ଼ି,

ଟ୍ରକ୍, ବସ୍‌ର ଧୂଆଁ ନିଶ୍ଚିତ ଭାବରେ କର୍କଟରୋଗ କରାଏ ।

ଦୂଷିତ ପରିବେଶ ଆଉ କି କି ରୋଗ କରାଏ ଭାଇ ?

ଆରେ, ପରିବେଶ ଦୂଷିତ ହେବା ଯୋଗୁଁ ଏତେ ପ୍ରକାର ରୋଗହୁଏ ଯେ ତା'ର ହିସାବ ଦେଇ ହେବ ନି । ଦୂଷିତ ପରିବେଶରେ ରହିଲେ ନାନା ପ୍ରକାର ମାନସିକ ରୋଗହୁଏ । କେତେ ପ୍ରକାର ପେଟରୋଗ ହୁଏ । ଖାଦ୍ୟ ଭଲ ଭାବରେ ହଜମ ହୁଏନାହିଁ, ଅଗ୍ନିମାନ୍ଦ୍ୟ ପ୍ରଭୃତି କେତେ ପ୍ରକାର ରୋଗ ହୁଏ । ଦୂଷିତ ପରିବେଶ ଭିତରେ ରହିଲେ ମାନସିକ ବିକାରଜନିତ ରୋଗ ଜାତ ହୁଏ । ମନ ଚଢ଼ଚଢ଼ିଆ ହୁଏ । ଫୁସ୍‌ଫୁସ୍ ପ୍ରଦାହ, ବ୍ରୋକାଇଟ୍ ଆଦି କେତେ ପ୍ରକାର ମାରାତ୍ମକ ରୋଗହୁଏ । କଳକାରଖାନାକୁ ଆମର ଭୟ କରିବା କଥା । ଆମ ପରିବେଶକୁ ଦୂଷିତ କରିବାରେ ଏହାର କାମ ସବୁଠାରୁ ଅଧିକ ।

ଆରେ, ଗଲାବର୍ଷ ଯେଉଁ ଭୋପାଳ ଗ୍ୟାସ ଦୁର୍ଘଟଣା ଘଟିଲା, କେତେ ଲୋକ ମଲେ ତୁ ଜାଣିଛୁ ତ ? ଯେତେବେଳେ ସେହି ଦୁର୍ଘଟଣା ଘଟିଲା, ସେଠାକାର ବୈଜ୍ଞାନିକମାନେ ଯଦି ତାକୁ କୌଣସି ଉପାୟରେ ଆୟତ୍ତ କରି ପାରିଥାନ୍ତେ, ତେବେ ଏତେ ଲୋକ ମରି ନ ଥାନ୍ତେ । ଏଭଳି ବିପଦ ଯେ କାରଖାନରେ ବେଳେ ବେଳେ ଆସିପାରେ, ସେଥିପତି କିଛି ବ୍ୟବସ୍ଥା ପୂର୍ବରୁ କରାଯାଇ ନ ଥିଲା । ଏହା ସେଠା କାରଖାନାର ଚରମ ଦାୟିତ୍ୱହୀନତା ।

ହଁ ଭାଇ, ଏବେ ରୁଷିଆରେ ଯେଉଁ ଚେର୍ଣ୍ଣବିଲ ପରମାଣୁ ରିଆକ୍ଟର ଦୁର୍ଘଟଣା ଘଟିଲା, ସେ ମଧ୍ୟ ପରିବେଶକୁ ଏତେ ଦୂଷିତ କରି ପକାଇଲା ଯେ, ଢେର ଲୋକ ମରିଗଲେ ।

ହଁ, ବିଜ୍ଞାନର ଅଗ୍ରଗତିରେ ଏଭଳି ଦୁର୍ଘଟଣା ହେବ ହିଁ ହେବ । ତେବେ ସେଥିପ୍ରତି ସଜାଗ ରହି ଆମେ ଯଦି ବିହିତ ବ୍ୟବସ୍ଥା କରି ରଖିଥିବା, ତେବେ

ଏତେ ଲୋକ ମରିବେ ନା। ପରିବେଶ ଯେମିତି ଦୂଷିତ ନ ହୁଏ, ସେଥିପ୍ରତି ସଜାଗ ରହିଲେ, ଏଭଳି ବିପଦକୁ ଏଡ଼ାଇ ଦେଇ ହେବ । ଏହିସବୁ ଦେଖି ପରିବେଶ ସମ୍ପର୍କରେ ବୈଜ୍ଞାନିକମାନେ କ'ଣ କହନ୍ତି ଜାଣୁ ?

'କ'ଣ କହନ୍ତି ଭାଇ ?'

ସେମାନେ କହନ୍ତି, ଏହି ପରିବେଶ ଦୂଷିତକରଣ ଯଦି କ୍ରମାଗତ ଭାବରେ ଚାଲେ, ତେବେ ଭଲ ଶିଶୁ ପରିବର୍ତ୍ତେ ବିକଳାଙ୍ଗ ଶିଶୁ ଜନ୍ମ ନେବେ । ବୁଦ୍ଧି ନ ଥିବା ପିଲାଏ ଜନ୍ମ ପାଇବେ । ଜନ୍ମ ପାଉଥିବା ପୁଅ ଝିଅଙ୍କ ଅନୁପାତ ବଦଳିଯିବ । ଅଧାଅଧି ନ ହୋଇ କମ୍ ବେଶି ହୋଇଯିବ ।

ଆଁ, କମ୍ ବେଶି ହେଇଯିବ ?

ହଁ, ଜଣେ ଇଟାଲୀୟ ବୈଜ୍ଞାନିକ ହିସାବ କରି କହିଛନ୍ତି ଯେ ଏହି ଦୂଷିତକରଣ ଫଳରେ ଅଧିକ ଝିଅ ପିଲା ଜନ୍ମ ନେବେ । ପୁଅ ପିଲାଙ୍କ ସଂଖ୍ୟା କମିଯିବ । ଏହା ଫଳରେ ବହୁ ଯୁବତୀ ବିବାହ ପାଇଁ ବର ପାଇବେ ନାହିଁ । ସମାଜରେ ଭ୍ରଷ୍ଟାଚାର ବଢ଼ିଯିବ ।

'ଆଁ, ଏମିତି ହେଇଯିବ ?'

'ହଁ ରେ, ଖାଲି ସେତିକି ନୁହେଁ, ଧୀରେ ଧୀରେ ଆମ ଜନସଂଖ୍ୟା କମିଯିବ । ବହୁ ଲୋକ ମୃତ୍ୟୁମୁଖରେ ପଡ଼ିବେ । ଆମେ ଯଦି ପରିବେଶକୁ ନ ସୁଧାରୁଁ, ତେବେ ଦିନେ ପୃଥିବୀ ଜନମାନବ ଶୂନ୍ୟ ହୋଇଯିବ । ଲୋକେ ଡରୁଛନ୍ତି କ'ଣ ନା ତୃତୀୟ ମହାସମର ହେଲେ ପୃଥିବୀ ଧ୍ୱଂସ ପାଇଯିବ । କିନ୍ତୁ ମନେରଖ, ପୃଥିବୀ ଯଦି ଧ୍ୱଂସ ପାଇବ, ତେବେ ଏହି ପରିବେଶ ଦୂଷିତ କରଣରୁ, ତୃତୀୟ ମହାସମର ଯୋଗୁଁ ନହେଁ ।

# ପରିବେଶ ସୁଧୁରିବ କେମିତି ?

'ଭାଇ, ତୁମେ ସେଦିନ ଖାଲି ପରିବେଶ କେମିତି ଦୂଷିତ ହୁଏ କହିଲ । କିନ୍ତୁ କହିଲ ତ ନି ଏହା କେମିତି ସୁଧୁରିଯାଇ ପାରିବ ? ପରିବେଶ ନ ସୁଧୁରିଲେ ତ ଆମେ ସମସ୍ତେ ଧ୍ୱଂସ ପାଇଯିବା । ପୃଥିବୀ ଜନଶୂନ୍ୟ ହୋଇଯିବ ।'

ପରିବେଶକୁ ସୁଧାରିବା ଆମ ସମସ୍ତଙ୍କର କାମ । ଆମେ ସମସ୍ତେ ଏଥିପ୍ରତି ସଜାଗ ହେବା ଦରକାର । ଆମେ ସମସ୍ତେ ସଜାଗ ହେଲେ ଏହା ସହଜରେ ସୁଧୁରି ଯିବ ।

'କେମିତି ଭାଇ ?'

ଆମ ପରିବେଶ ଦୂଷିତକରଣର ପ୍ରଧାନ କାରଣ ହେଲା, କଳକାରଖାନା ଓ ଯାନବାହନ । ଆମ ସରକାର ଯଦି ସବୁ କଳକାରଖାନାକୁ ନିର୍ଦ୍ଦେଶ ଦେବେ, ତୁମେ ତୁମର କାରଖାନାରୁ ବାହାରୁଥିବା ଦୂଷିତ ଗ୍ୟାସ୍‌କୁ ଶୋଧନ କରିସାରି ଆକାଶକୁ ଛାଡ଼ । ତୁମ କାରଖାନାରୁ ଯେଉଁ ସବୁ ମଇଳା ଜଳ ବାହାରୁଛି, ତାକୁ ଶୋଧନ କରିସାରି ନଦୀ ଆଉ ହ୍ରଦକୁ ଛାଡ଼ । ତେବେ ଯାଇ ସେମାନେ ତାହା କରିବେ । ସରକାର ବାଧ୍ୟ ନ କଲେ ପର୍ଯ୍ୟନ୍ତ ସେମାନେ କରିବେ ନି ।

'କାହିଁକି ଭାଇ ? ସେମାନେ ତ ଜାଣୁଛନ୍ତି, ଏହା କଲେ ଲୋକମାନଙ୍କର ହିତ ହେଉଛି, ସେମାନଙ୍କ ଦେହ ପା ଖରାପ ହେଉଛି, ସେମାନେ ନ କରିବେ କାହିଁକି ?'

'ଆରେ, ସେଥିପାଇଁ ପୁଣି କୋଟି କୋଟି ଟଙ୍କା ଦରକାର । ଏତେ ଟଙ୍କା ଖଟେଇ ତ କାରଖାନା କରିଛନ୍ତି । ପୁଣି ଏତେ ଟଙ୍କା ଖଟାଇଲେ ଅଧିକ ଲାଭ ତ ହେବ ନି, ଖଟାଇବେ କାହିଁକି ?'



କଳକାରଖାନାରୁ ବାହାରୁଥିବା ଦୂଷିତ ଗ୍ୟାସ ଓ ଜଳ ଶୋଧନ କରାଯାଇ ଛଡ଼ାଯାଉଛି

'ଏହି ଦୂଷିତ ଜଳ ଓ ଗ୍ୟାସକୁ ଶୋଧନ କରିବା ପାଇଁ କ'ଣ ଯନ୍ତ୍ର ଅଛି ଭାଇ ?'

'ହଁ, ଆରେ ନାହିଁ ତ କ'ଣ ? କେତେ ପ୍ରକାର ଯନ୍ତ୍ର ରହିଛି । ସେ ଯନ୍ତ୍ର ବ୍ୟବହାର କଲେ ଚିମନିରୁ କଳାଧୂଆଁ କି ବିଷାକ୍ତ ବାଷ୍ପ ବାହାରିବ ନି । ସେହି ବାହାରୁଥିବା ବିଷାକ୍ତ ଗ୍ୟାସକୁ ନେଇ ସେଥିରୁ ନାନା ରାସାୟନିକ ପଦାର୍ଥ ତିଆରି କରାହେବ । ଏହିସବୁ ଆମର ଢେର କାମରେ ବି ଲାଗିବ ।'

'ଆଉ ନାଳ ନର୍ଦ୍ଦମାର ମଇଳା ଜଳ ?'

ଆଜକାଲି ଏମିତି ଉପାୟ ସବୁ ବାହାରିଲାଣି ଯେଉଁଥିରେ ଏହି ନାଳ-ନର୍ଦ୍ଦମା ପାଣିକୁ ପରିଷ୍କାର କରିହେବ । ସେ ପାଣି ପୁଣି ଏତେ ପରିଷ୍କୃତ ହୋଇଯିବ ଯେ ଆମେ ତାକୁ ପିଇପାରିବା । ଏହି ଶୋଧନବେଳେ ଯେଉଁ ଖଦଡ଼ା ଅଂଶ ବାହାରିବ, ତାହା ଉତ୍କୃଷ୍ଟ ସାର ହେବ । ଏହି ଖତକୁ ବ୍ୟବହାର କରି ଆମେ ଭଲ କୃଷି କରିପାରିବା ।

'ଯାନବାହନରୁ ଯେଉଁ ଦୂଷିତ ଗ୍ୟାସ ବାହାରୁଛି, ତାକୁ କେମିତି ଶୋଧନ କରିହେବ ?'

ସେସବୁ ଦୂଷିତ ଗ୍ୟାସକୁ ମଧ୍ୟ ଶୋଧନ କରିହେବ । ଯାନବାହନ ଇଞ୍ଜିନ ସହିତ ଏମିତି ଯନ୍ତ୍ର ଲଗାଇ ହେବ, ଯାହା ଫଳରେ ସେହି ଦୂଷିତ ଗ୍ୟାସ ଛାଣି ହୋଇ ରହିଯିବ । ଭଲ ଗ୍ୟାସ ବାହାରି ବାୟୁରେ ମିଶିବ । ତା ଛଡ଼ା ବଡ଼ ବଡ଼ ବସ, ଟ୍ରକ୍ ଆଦିକୁ ସହର ଭିତରକୁ ଛଡ଼ା ଯିବନି । ସହର ଭିତରେ ଇଲେକ୍‌ଟ୍ରିକ୍ ଟ୍ରାମ, ଟ୍ରଲିବସ୍ ଆଦି ଚଳପ୍ରଚଳ ହେବ । ତେଣୁ ସହରର ବାୟୁମଣ୍ଡଳ ଆଉ ଦୂଷିତ ହେବ ନି । ଏହି ବଡ଼ ବଡ଼ ଟ୍ରକ୍, ବସ୍ ଗାଁ ଦେଇ ରାସ୍ତାରେ ଗଲେ, ଗାଁ ବାୟୁମଣ୍ଡଳ ପ୍ରଶସ୍ତ ଥିବାରୁ ଖରାପ ହେବନି ।

# ଗଛ ଲଗାଇବା ଠାରୁ ବଡ଼ ପୁଣ୍ୟ ଆଉ କିଛି ନାହିଁ

କଳକାରଖାନା ପାଇଁ କିଛି ଉପାୟ କରିହେବ । ସେମାନଙ୍କ ଗ୍ୟାସ ଆଉ ଆମ ଆକାଶ ମଣ୍ଡଳକୁ ଦୂଷିତ କରିବ ନ । କିନ୍ତୁ ଆମେ ଘରେ ଯେଉଁ ରନ୍ଧାବଢ଼ା କରୁଛୁ, ନାନା ପଦାର୍ଥ ଜାଳୁଛୁ, ସେଥିରେ ବହୁତ ଅଙ୍ଗାରକାମ୍ଳ ଗ୍ୟାସ ବାହାରୁଛି । ତା'ପାଇଁ କ'ଣ କରାଯିବ ? ତାକୁ ତ ବନ୍ଦ କରିହେବ ନ !

'ଆରେ, ଅଙ୍ଗାରକାମ୍ଳ କମିବ, ବେଶି ପରିମାଣରେ ଗଛ ଲଗାଇଲେ । ବାୟୁମଣ୍ଡଳର ଦୂଷିତକରଣକୁ କମାଇବା ପାଇଁ ଗଛ ଏକ ପ୍ରଧାନ ସମ୍ବଳ । ଆମ ଯୁଗରେ ଗଛ ଲଗାଇବା ଏକ ପୁଣ୍ୟ କାମ ବୋଲି ଧରାଯାଉଥିଲା । ଆଗ ଯୁଗରେ ରାଜା, ମହାରାଜା, ବୁଦ୍ଧିମନ୍ତ ଲୋକେ ରାସ୍ତାକଡ଼ରେ ଗଛ ଲଗାଉଥିଲେ । ଏହା ରାସ୍ତାର ପଥିକକୁ ଛାଇ ଦେଉଥିଲା । ସେମାନେ ଗଛମୂଳରେ ବିଶ୍ରାମ ନେଉଥିଲେ । ଆଜିକାଲି ତ ରାଜା ମହାରାଜାମାନେ ନାହାନ୍ତି । ଆମେ ସେଭଳି ଗଛ ଲଗାଇବା ଦରକାର । ଗଛ ଦୂଷିତ ବାୟୁକୁ ଶୋଧନ କରେ ।

'କେମିତି ?'

ଗଛରେ ଯେଉଁ ପତ୍ର ଥାଏ, ତାହା କ'ଣ କରେ ଜାଣ ? ଏହି ପତ୍ର ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଶୋଷିନିଏ । ଗଛ ଏଥିରୁ ଶ୍ୱେତସାର ତିଆରି କରି ଅମ୍ଳଜାନ ଗ୍ୟାସ୍ ବାହାର କରିଦିଏ । ଏହି ଶ୍ୱେତସାର, ଗଛକୁ ବଢ଼ିବାରେ ସାହାଯ୍ୟ କରେ । ଶେଷରେ ଶ୍ୱେତସାର ଖାଦ୍ୟ ଭାବରେ ଗଛର ଫଳରେ ଜମିରହେ । ଆମେ ତାକୁ ଖାଇ ଜୀବନ ଧାରଣ କରୁଁ । ଧାନ, ଗହମ, ଯଅ, ମକ୍କା ଆଦି ଶ୍ୱେତସାର ବାୟୁମଣ୍ଡଳର ଅଙ୍ଗାରକାମ୍ଳରୁ ତିଆରି ହୁଏ । ଆମ ବାୟୁମଣ୍ଡଳରେ ଯଦି ଅଙ୍ଗାରକାମ୍ଳ ନ ରହନ୍ତା, ତେବେ ଧାନ, ଗହମ ଆଦି ଗଛ

ହେବନି । ଆମେ ସମସ୍ତେ ଖାଦ୍ୟ ଅଭାବରୁ ମରିଯିବା । ଗଛ ଏହି ଯେଉଁ ଅମ୍ଳଜାନ ଗ୍ୟାସ୍ ଛାଡ଼େ, ଆମେ ତାକୁ ଗ୍ରହଣକରି ଜୀବନ ଧାରଣ କରୁଁ । ତେଣୁ ଆମେ ବଞ୍ଚିବାପାଇଁ ଗଛ ଲୋଡ଼ା ଓ ଗଛ ବଞ୍ଚିବାପାଇଁ ଆମେ ଲୋଡ଼ା ।

'ତୁମେ ସେଦିନ କହୁଥିଲ ନା, ଆମ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ପରିମାଣ ବଢ଼ି ଯାଇଛି ।'

'ହଁ, ବଢ଼ିଯାଉଛି ତ । ଆମେ ଘରିଆଡ଼େ ଗଛକାଟି ପଦା କରିଦେଲୁଁ । ଆଗ ଯୁଗରେ ଆମ ଦେଶରେ ଯେତେ ବଣଜଙ୍ଗଲ ଥିଲା, ଆଜିକାଲି ତ ତାହା ଆଉ ନାହିଁ । ବୈଜ୍ଞାନିକମାନେ ଗଣନା କରି ଦେଖିଛନ୍ତି ଯେ ୪୦।୫୦ ବର୍ଷ ତଳେ ଆମ ଦେଶରେ ଯେତେ ବଣଜଙ୍ଗଲ ଥିଲା, ବର୍ତ୍ତମାନ ତା'ର ତିନିଭାଗରୁ ଭାଗେ ଅଛି କି ନାହିଁ ସନ୍ଦେହ । ଏଥିରେ ପୁଣି ଲୋକସଂଖ୍ୟା ଓ ପ୍ରାଣୀମାନଙ୍କ ସଂଖ୍ୟା ଦୁଇ ତିନିଗୁଣ ବଢ଼ିଯାଇଛି । ଗଛ ଛଡ଼ା ତ ଆଉ କେହି ଅଙ୍ଗାରକାମ୍ଳକୁ ନେଇ ଅମ୍ଳଜାନ ଦେଇପାରିବେ ନାହିଁ । ତେଣୁ ଆମ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବଢ଼ିଯିବାଛଡ଼ା ଅନ୍ୟଗତି ନାହିଁ । ଆମ ବାୟୁମଣ୍ଡଳରେ ଅଙ୍ଗାର-କାମ୍ଳ କମାଇବାକୁ ହେଲେ ଆମର ଢେର ଗଛ ଲଗାଇବା ଦରକାର । ଆସନ୍ତା ଦଶ ପନ୍ଦର ବର୍ଷ ଭିତରେ ଆମ ଗଛର ପରିମାଣ ୩।୪ ଗୁଣ ନ କଲେ ଆମେ ବଞ୍ଚି ପାରିବା ନି । ଆମ ଲୋକସଂଖ୍ୟା ପରା ଦିନକୁ ଦିନ ବଢ଼ିଯାଉଛି । ଗଛ ସଂଖ୍ୟା ନ ବଢ଼ାଇଲେ ଆମକୁ ଅମ୍ଳଜାନ ଦେବ କିଏ ?

'ଅଙ୍ଗାରକାମ୍ଳ ପରିମାଣ ବଢ଼ିଗଲେ, ଆଉ କ'ଣ କ୍ଷତି ହେବ ଭାଇ ?'

ଅଙ୍ଗାରକାମ୍ଳ ପରିମାଣ ବଢ଼ିଗଲେ ଆମ ବାୟୁର ଉତ୍ତାପ ବଢ଼ିଯିବ । ବାୟୁର ଉତ୍ତାପ ବଢ଼ିଗଲେ ଆମ ସମଗ୍ର ଦେଶରେ ଯେତେ ବରଫ ଜମାଟବାନ୍ଧି ରହିଛି, ସେସବୁ ତରଳିଯିବ । ଏହାଫଳରେ ସମୁଦ୍ରର ଜଳପତ୍ତନ ବଢ଼ିଯିବ । ସମୁଦ୍ର କୂଳରେ ଯେତେ ସହର, ଗାଁ ଜମିବାଡ଼ି ଅଛି ସେସବୁ ବୁଡ଼ିଯିବ ।

ସମୁଦ୍ର କୂଳର ବୋମ୍ବେ, କରାଚି, ନିଉୟର୍କ ଆଦି ବଡ଼ବଡ଼ ସହର ସମୁଦ୍ର ଜଳରେ ବୁଡ଼ିଯିବ । ବହୁ ଲୋକ ବାସଚ୍ୟୁତ ହୋଇଯିବେ । ଅସୁମାରି ଧନ ସମ୍ପତ୍ତି ନଷ୍ଟ ହୋଇଯିବ ।

'ଗଛର ପତ୍ର ଖାଲି ଅଙ୍ଗାରକାମ୍ଳକୁ ଶୋଷେ ନା ଅନ୍ୟ ବିଷାକ୍ତ ଗ୍ୟାସ୍‌କୁ ବି ଶୋଷିନିଏ ?'

ଗଛର ପତ୍ର ତା'ର ରନ୍ଧ୍ରରେ କିଛି ପରିମାଣର ବିଷାକ୍ତ ଗ୍ୟାସକୁ ଶୋଷି ନେଇ ରଖେ । ଯେତେବେଳେ ବର୍ଷା ହୁଏ, ସେସବୁ ବର୍ଷା ଜଳରେ ଧୋଇ ହୋଇ ଭୂମିକୁ ଖସି ଆସନ୍ତି । ତେଣୁ ବାୟୁମଣ୍ଡଳରେ ଅଳ୍ପ ପରିମାଣର ବିଷାକ୍ତ ଗ୍ୟାସ ଥିଲେ, ତାକୁ ଗଛର ପତ୍ର ସଫା କରିଦିଏ । ବେଶି ପରିମାଣରେ ଥିଲେ ପାରେ ନି । ବାୟୁରେ ଯଦି ଦୂଷିତ କଣିକା ଥାଏ, ତେବେ ତାହା ମଧ୍ୟ ପତ୍ର ନିଜ ରନ୍ଧ୍ରରେ ସ୍ଥାନ ଦିଏ । ତାହା ବର୍ଷାରେ ଧୋଇଯାଇ ଭୂମି ଉପରକୁ ଖସିଯାଏ । ଏହିଭଳି ଭାବରେ ବାୟୁ ଶୋଧନରେ ଗଛର ପତ୍ର ଢେର କାମ କରେ ।

'ହଁ ଭାଇ, ସେଇଥିପାଇଁ ଆମର ଅଧିକ ଗଛ ଲଗାଇବା ଦରକାର । ଆମେ ପ୍ରତିବର୍ଷ ଯେତିକ ଗଛ କାଟିବା, ତା'ର ଦୁଇଗୁଣ ଗଛ ଲଗାଇବା ।'

ହଁ, ଠିକ୍ କହିଛୁ, ଏହା ଯଦି ଆମେ କରୁଁ, ତେବେ ଆଉ କେତେ ବର୍ଷ ଭିତରେ ଆମ ପୃଥିବୀ ସବୁଜମାରେ ହସି ଉଠିବ । ଆମ ବାୟୁମଣ୍ଡଳ ଶୋଧିତ ହୋଇଯିବ । ତା ଯଦି ନ କରି ଆମେ ଗଛ କାଟୁଥିବୁଁ, ତେବେ ଆମ ଅବସ୍ଥା ଆଫ୍ରିକା ମହାଦେଶର ଏଥିଓପିଆ ରାଜ୍ୟ ଭଳି ହେବ ।

'ସେ ରାଜ୍ୟରେ କ'ଣ ହୋଇଛି ଭାଇ ?'

ଆଜକୁ ୪୦।୫୦ ବର୍ଷ ତଳେ, ସେ ଦେଶ ସୁଜଳା ସୁଫଳା ଜଙ୍ଗଲଭରା ଥିଲା । ଲୋକମାନେ ଆଖିବୁଜ ଗଛ କାଟି ବିକ୍ରୀ କରିଦେଲେ । ସେ ଦେଶରେ ବର୍ତ୍ତମାନ ଆଉ ଜଙ୍ଗଲ ନାହିଁ । ଏହା ଫଳରେ ସେ ଦେଶର ଜଳବାୟୁ ପୂରାପୂରି ବଦଳି ଯାଇଛି । ସେଠି ଆଉ ପୂର୍ବଭଳି ବର୍ଷା ହେଉନି । ସେ ସୁଜଳା ସୁଫଳା ଦେଶ ଆଉ ସେଭଳି ନାହିଁ । ସେଠି ବର୍ତ୍ତମାନ ସବୁଦିନେ ଦୁର୍ଭିକ୍ଷ । ଲୋକେ ଖାଇବାକୁ ପାଉନାହାନ୍ତି । ଖାଦ୍ୟାଭାବରୁ ନାନା ରୋଗ ସେମାନଙ୍କୁ ଅସ୍ଥି କଙ୍କାଳସାର କରି ସାରିଲାଣି ।

'ଆଁ, ଦେଶଟା ପୂରାପୂରି ନଷ୍ଟ ହୋଇଗଲା !'

ହଁ, ହେଲାନି ତ କ'ଣ ! ପୃଥିବୀର ଲୋକେ ଚାନ୍ଦା କରି ସେ ଦେଶକୁ ଟଙ୍କା ପଠାଉଛନ୍ତି । ସେମାନେ ସେହି ଦାନ ନେଇ ଢୋକେ ପିଇ ଦଣ୍ଡେ ଜୀଇ ଯାହାକିଛି ବଞ୍ଚି ରହିଛନ୍ତି । ପରିବେଶକୁ ନଷ୍ଟ କଲେ କି ବିପଦ, ତାହା ଏଥିଓପିଆ ରାଜ୍ୟ ଆମକୁ ଦେଖାଇ ଦେଉଛି । ଏଥିଓପିଆ, ଆମର ଚେତାବନୀ । ଆମେ ଯଦି ସେହିଭଳି ଜଙ୍ଗଲ ସଫା କରିଦେଉଁ, ତେବେ ଆମ ଅବସ୍ଥା ସେମିତି ହେବ । ଆଫ୍ରିକାର ଆଉ କେତେକ ଦେଶ ମଧ୍ୟ ଏଥିଓପିଆ ଅବସ୍ଥା ଆଡ଼କୁ ଗଲେଣି । ଆମେ ମଧ୍ୟ ସେ ଆଡ଼କୁ ଧୀରେ ଧୀରେ ଯାଉଛୁ ।

## ସୁନାର ଭାରତ ମରୁଭୂମି ହୋଇଯିବ

ତୁମେ କ'ଣ କହୁଛ ଭାଇ, ଆମ ଦେଶ ଦିନେ ଏଥିଓପିଆ ରାଜ୍ୟ ଭଳି ହୋଇଯିବ ?

ହୋଇଯିବ କ'ଣରେ ? ହେଲାଣି ପରା !

'ଆଁ, ହେଲାଣି ?'

ହଁ, ହଁ, ଆମେ ଶେଷରେ ସେ ଆଡ଼କୁ ଆଗଉଛୁଁ । ବୈଜ୍ଞାନିକମାନେ କହୁଛନ୍ତି, ଆଖିବୁଜା ଗଛ କାଟିବା ଫଳରେ ରାଜପୁତନା ମରୁଭୂମି ଦିଲ୍ଲୀ ଆଡ଼କୁ ମାଡ଼ିଯାଉଛି । ଆଉ କିଛି ବର୍ଷ ଭିତରେ ଦିଲ୍ଲୀ ସହର ମରୁଭୂମି ହୋଇଯିବ ।

'ଆଁ, ଦିଲ୍ଲୀ ମରୁଭୂମି ହୋଇଯିବ ?'

'ହଁ, ନ ହେବ କାହିଁକି ? ଜଙ୍ଗଲ ସଫା କରିଦେଲେ, ଏହାର ଫଳ କଅଣ ହେବ ଦେଖ । ଆମ ଦେଶରେ ଆଗରୁ ଯେମିତି ରୀତିମତ ଭଲ ବର୍ଷା ହେଉଥିଲା, ଆଜିକାଲି ସେମିତି ହେଉନି । କେଉଁଠି ମରୁଡ଼ି ତ କେଉଁଠି ମୂଷଳ ବର୍ଷା ଆଉ କେଉଁଠି ବନ୍ୟା କରି ପକାଉଛି । ଏସବୁ ଏହି ଗଛ ଅଭାବର ଫଳ । ଧୀରେ ଧୀରେ ଆମର ସୁନାର ଭାରତ ନିପଟ ମରୁଭୂମିରେ ପରିଣତ ହୋଇଯିବ । ଆମେ ମଧ୍ୟ ଏଥିଓପିଆ ରାଜ୍ୟ ଭଳି ମାଗି କରି ଚଳିବା ।'

'ଗଛ କାଟି ପକାଇଲେ ଆଉ ସବୁ କ'ଣ କ୍ଷତି ହୁଏ ଭାଇ ?'

ଗଛ କାଟି ପକାଇଲେ ଜମି କ୍ଷୟ ବଢ଼ିଯାଏ । ଜମିର ଉର୍ବର ଶକ୍ତି କମିଯାଏ । ବର୍ଷା ଦିନେ ଅଧିକ ମାଟି ଭୂମିଉପରୁ ଧୋଇଯାଇ ନଦୀ ଜଳରେ ମିଶେ । ଯେଉଁ ନଦୀରେ ନଦୀବନ୍ଧ ଯୋଜନା ଥାଏ, ସେଠି ନଦୀର ଜଳ-ଭଣ୍ଡାର ପୋତି ହୋଇଯାଏ । ଆମ ହୀରାକୁଦ ଜଳଭଣ୍ଡାରରେ ଏଥିପାଇଁ କ'ଣ ହୋଇଛି ଜାଣୁ ?

'କ'ଣ ହୋଇଛି ?'

ହୀରାକୁଦ ଜଳଭଣ୍ଡାରର ପରମାୟୁ ଥିଲା ତିନିଶହ ବର୍ଷ । ମାତ୍ର ୩୦ ବର୍ଷ ଭିତରେ ଜଳଭଣ୍ଡାର ପୋତି ହୋଇଗଲାଣି । ଆଉ ବେଶି ଜଳ ରହିପାରୁନି । ତେଣୁ ବିଜୁଳି ଉତ୍ପାଦନ କମ୍ ହେଉଛି । ସେଥିପାଇଁ ଆମ ଦେଶରେ ବିଜୁଳି କାଟ ଚାଲିଛି । କଳକାରଖାନା ବନ୍ଦ ହୋଇଯାଉଛି । ଲୋକେ ଭୋକଉପାସରେ କଳବଳ ହେଉଛନ୍ତି । ଏସବୁ ହେଲା ଆଖିବୁଜା ଗଛ କାଟିବାର ଫଳ ।

'ଆମ ସରକାର କ'ଣ ଆଜିକାଲି ଅଧିକ ଗଛ ଲଗାଉଛନ୍ତି ଏ ଅବସ୍ଥାକୁ ସୁଧାରିବା ପାଇଁ ?'

'ହଁ, ତାହା ଏକ ଶୁଭ ଖବର ଆମ ଦେଶପାଇଁ । ହେଲେ ଆମ ଲୋକଙ୍କର ସେଥିପ୍ରତି ସହଯୋଗ ନ ରହିଲେ କ'ଣ ତାହା କୃତକାର୍ଯ୍ୟ ହେବ ? ସରକାର ଗଛଗୁଡ଼ିକ ମାଗଣାରେ ବାଣ୍ଟୁଛନ୍ତି । ଆମ ଲୋକେ ସିନା ସେସବୁକୁ ଆଣି ନିଜ ବାଡ଼ିବଗିଚାରେ ଲଗାଇଲେ ଏହି ଗଛସଂଖ୍ୟା ବଢ଼ିବ । ଲୋକେ ନ କଲେ ସରକାର କେତେ କ'ଣ କରିବେ ? ସରକାର ସିନା ଗଛ ଲଗାଇ ଦେବେ, ତା'ର ହେପାଜତ କରିବ କିଏ, ଲୋକେ ତ ? ଲୋକଙ୍କ ସହଯୋଗ ନ ମିଳିଲେ କିଛି ହୋଇପାରିବ ନି । ଆମ ସରକାର ଯେମିତି ଡାକ ଦେଉଛନ୍ତି, ପିଲା ଗୋଟିକୁ ଗଛ ଗୋଟିଏ, ଆମର ସେଥିରେ ସହଯୋଗ କରିବା ଦରକାର ।

'ଆଜିକାଲି ଯେଉଁ ସାମାଜିକ ବନୀକରଣ କଥା ଲୋକେ କହୁଛନ୍ତି ତା'ର ଅର୍ଥ କଅଣ ଭାଇ ?'

ସାମାଜିକ ବନୀକରଣରେ ଲୋକଙ୍କ ସହଯୋଗ ଏକାନ୍ତ ଲୋଡ଼ା । ଆମ ସହର, ମଫସଲରେ ଯେଉଁ ଖାଙ୍ଗର ଭୂଇଁ, ପଡ଼ିଆ ଆଦି ଅଛି, ସେଠି ଗଛ ଲଗାଇଲେ ସେ ସ୍ଥାନ ସବୁଜିମାରେ ଭରିଯିବ । ଏହା ଫଳରେ ଖରାଦିନେ ଆଖପାଖ ଜଳବାୟୁ ଥଣ୍ଡା ରହିବ । ଶୀତଦିନେ ଅଧିକ ଥଣ୍ଡା ଓ ଗରମ ଦିନେ କମ ଗରମ ହେବ । ଲୋକେ ଯଦି ଫଳଗଛ ନିଜ ବାଡ଼ିବଗିଚାରେ ଲଗାନ୍ତି, ତେବେ ଫଳ ଆମଦାନୀରୁ ଦି'ପଇସା ଅଧିକ ରୋଜଗାର କରି-ପାରିବେ । ଅଧିକ ଗଛ ଲାଗିଲେ, ନୂଆ ନୂଆ ଜଙ୍ଗଲ ସୃଷ୍ଟି ହେବ । ଜାଳେଣୀ କାଠ ଦାମ ବର୍ତ୍ତମାନ ଯାହା ବଢ଼ିଛି, ସେତେ ହେବ ନି । କାଠ ଅଭାବରୁ ଗରିବ ଲୋକମାନେ ଯେଉଁ ହଇରାଣ ହରକତ ହେଉଛନ୍ତି, ଦୁଇବେଳା ରାନ୍ଧି ଖାଇପାରୁ ନାହାନ୍ତି, ତାହା ଦୂର ହେବ ।



ସ୍କୁଲ୍ ପିଲାମାନେ ଗଛ ଲଗାଉଛନ୍ତି

ହଁ, ଭାଇ, ବାଡ଼ିବଗିଚା, ରାସ୍ତାଘାଟ, ପଡ଼ିଆ, ଡାଙ୍ଗର ଜମି ସବୁଆଡ଼େ ଗଛ ଲଗାହେବା ଉଚିତ । ଆମ୍ବ, ପଣସ, ପିଜୁଳି, ସପେଟା, ଆଦି ଗଛ ଲଗାଇଲେ ଆମ ଦେଶରେ ଫଳର ଅଭାବ ମଧ୍ୟ ରହନ୍ତା ନାହିଁ । ଫଳ ଶସ୍ତାରେ ମିଳନ୍ତା, ଆମେ ସମସ୍ତେ ଖାଇପାରନ୍ତେ ।

'ହଁ, ଏହି ଗଛଲଗା ସ୍କୁଲ କଲେଜର ପିଲାଙ୍କ ଠାରୁ ଆରମ୍ଭ ହେବା ଉଚିତ । ସ୍କୁଲର ପ୍ରତ୍ୟେକ ପିଲା ଯେମିତି କେତୋଟି ଲେଖାଏଁ ଗଛ ଲଗାନ୍ତି, ଓ ସେହି ଗଛର ତତ୍ତ୍ୱାବଧାନ ନିଅନ୍ତି, ତାହାକୁ ଶିକ୍ଷକମାନେ ଦୃଷ୍ଟିଦେବା ଉଚିତ । ଗଛ ଲଗାଇବା ପାଇଁ ପିଲାମାନଙ୍କୁ ପ୍ରାଇଜ ଦେବା ବ୍ୟବସ୍ଥା ହେବା ଉଚିତ । ପିଲାମାନେ ଯେମିତି ଗଛଲଗା ଆଡ଼କୁ ଆକୃଷ୍ଟ ହେବେ ସେଥିପାଇଁ ବିଭିନ୍ନ ବ୍ୟବସ୍ଥା ହେବା ଆବଶ୍ୟକ । ପିଲାମାନେ ଯଦି ଜାଣିବେ ଗଛ ହିଁ ଆମ ଜୀବନ, ଗଛ ନ ରହିଲେ ଆମେ ରହିପାରିବା ନାହିଁ, ସେମାନେ ଗଛ ଆଡ଼କୁ ନିଶ୍ଚୟ ଆକୃଷ୍ଟ ହେବେ । ସେହି ଧାରଣା ସେମାନଙ୍କ ମନରେ ସୃଷ୍ଟି କରିବାକୁ ପଡ଼ିବ ।

ଭାଇ, ମଫସଲରେ ଯିନା ଯାଗା ଅଛି, ଗଛ ଲଗା ହେବ, ସହର ମାନଙ୍କରେ କ'ଣ ହେବ ? ସେଠି ଜାଗା କାହିଁ ଯେ ଗଛ ଲଗା ହେବ ?

ଆରେ, ମଫସଲ ଅପେକ୍ଷା ସହରରେ ଗଛର ଆବଶ୍ୟକ ଅଧିକ । ମଫସଲରେ ଗଛ ଅଳ୍ପ ବହୁତେ ଅଛି, ବାୟୁର ଶୋଧନ ଚାଲିଛି । 'ସହର ତ ପୂରାପୂରି ବଡ଼ ବଡ଼ କୋଠାବାଡ଼ିରେ ପୂର୍ଣ୍ଣ, ଜାଗା କାହିଁ ଯେ ଗଛ ଲଗା ହେବ ?'

'କାହିଁକି ? ସହରରେ ଯେଉଁ ବଡ଼ ବଡ଼ ରାସ୍ତା, ସଡ଼କ ଆଦି ରହିଛି ସେହି ରାସ୍ତାର ଦୁଇ କଡ଼ରେ ବା ଦୁଇରାସ୍ତା ମଝିରେ ଥିବା ଜାଗାରେ ଗଛ ଲଗା ହେବ । ପ୍ରତ୍ୟେକ ଲୋକଙ୍କ ଘର ସାମନା ବାଡ଼ିରେ ଗଛ ଲଗା ହେବ । ଏହି ଗଛ ଫଳଗଛ ହୋଇପାରେ ବା ଛାଇଦେଲା ଗଛ ହୋଇପାରେ ।




ରାସ୍ତା କଡ଼ରେ ଗଛସବୁ ଲଗାଯାଇଛି

ରାସ୍ତାମାନଙ୍କରେ ଉଭୟ ପ୍ରକାର ଗଛ ଲଗିପାରେ । ବାଡ଼ିବଗିଚାରେ ଫଳଗଛ ଲଗାଇଲେ ଦି'ପଇସା ରୋଜଗାର କରିହେବ । ଫଳ ମଧ୍ୟ ଖାଇବାକୁ ମିଳିବ । ସହରରେ ଯେଉଁ ଖୋଲା ପଡ଼ିଆ, ପାର୍କ ଆଦି ଅଛି, ସେହି ପଡ଼ିଆ ବା ପାର୍କ ଚାରିପାଖରେ ବଡ଼ ବଡ଼ ଗଛ ଲଗିବା ଦରକାର । ଏହି ଗଛସବୁ ଖରାଦିନେ ସହରର ଜଳବାୟୁକୁ ଥଣ୍ଡା ରଖିବ ଓ ସହରର ଦୂଷିତ ଜଳବାୟୁ ଶୋଧିତ ହେବ ।

## ପ୍ରାଣୀମାନେ ମଧ୍ୟ ଆମ ପରିବେଶର ଅଙ୍ଗ

ଉଦ୍ଭିଦମାନଙ୍କ ଭଳି ଆମ ପ୍ରାଣୀମାନେ ପରିବେଶକୁ ରକ୍ଷା କରନ୍ତି ଭାଇ ?

'ହଁ, ପ୍ରାଣୀମାନେ ନ ରହିଲେ ଢେର ଉଦ୍ଭିଦ ରହିବ ନାହିଁ । ଉଦ୍ଭିଦ ଯେମିତି ଆମ ପରିବେଶର ଅଙ୍ଗ, ପ୍ରାଣୀମାନେ ମଧ୍ୟ ସେମିତି ଆମ ପରିବେଶର ରକ୍ଷାକାରୀ ।

'କେମିତି ଭାଇ ?'

ମୁଁ ତୋତେ ଗୋଟିଏ ଉଦାହରଣ ଦେଉଛି ଶୁଣ୍ । ଆମେ ଯଦି ଆମ ଦେଶର ସବୁ କୁଆ, କୋଇଲି ଆଦି ପକ୍ଷୀଙ୍କୁ ମାରିଦେବା, ତେବେ ଆମ ଦେଶରେ ଛାଇ ଦେଉଥିବା ବଡ଼ବଡ଼ ବର କି ଅଶ୍ୱତ୍ଥ ଗଛ ରହିବ ନି । ବଡ଼ବଡ଼ ଗଛ ଆମ ପରିବେଶର ଅଧିକ ସୁରକ୍ଷା କରେ ।

'କେମିତି ଭାଇ, ବରଗଛ ସହିତ କାଉ କୋଇଲିର ସମ୍ପର୍କ କଅଣ ?'

ଆରେ ତୁ ଜାଣିଛୁ, ବରଗଛ କେମିତି ଜନ୍ମେ ? ବରଫଳରେ ଯେଉଁ ମଞ୍ଜି ଥାଏ, ଦେଖିଥିବୁ, ସେହି ମଞ୍ଜିକୁ ଲଗାଇଲେ କ'ଣ ଗଛ ହୁଏ ?

'ନା, ଭାଇ, ସେ ମଞ୍ଜିରୁ ତ ଗଛ ହୁଏ ନି ।'

'ତେବେ ବରଗଛ କେମିତି ଜନ୍ମେ ?'

'କେମିତି ?'

ସେହି ମଞ୍ଜିକୁ କୁଆ କୋଇଲି ଖାଇ ସେମାନେ ମଳତ୍ୟାଗ କଲେ, ସେହି ମଳରେ ବରଗଛ ମଞ୍ଜି ନରମ ହୋଇ ବାହାରି ଆସେ । ସେହି ମଞ୍ଜି ଯେତେବେଳେ ମାଟି ଓ ପାଣି ସଂସ୍ପର୍ଶରେ ଆସେ, ସେଥିରୁ ଗଜାହୋଇ ଗଛ ହୁଏ । ସେଥିପାଇଁ ଦେଖିବ ବର କି ଅଶ୍ୱତ୍‌ଥ ଗଛ ଘରଛାତର ଫାଟମାନଙ୍କରେ, ଭଙ୍ଗାଘରର କାନ୍ଥରେ ହୋଇଥାଏ । ସେହିସବୁ ସ୍ଥାନରେ ପକ୍ଷୀମାନେ ମଳ-ତ୍ୟାଗ କରୁଥିବାରୁ ସେହି ମଳରେ ଥିବା ମଞ୍ଜି ପଡ଼ି ସେଠାରେ ଗଛ ଉଠିଥାଏ । ଲୋକେ ସେହିସବୁ ସ୍ଥାନରୁ ବରଗଛ ନେଇ ଅନ୍ୟତ୍ର ଲଗାନ୍ତି । ବର, ଅଶ୍ୱତ୍‌ଥ ଗଛ ରାସ୍ତାକଡ଼ରେ ଲଗାଇବା ପୁଣ୍ୟକାମ ବୋଲି ଲୋକେ ଜାଣନ୍ତି । ସେମାନେ ବର ଓ ଅଶ୍ୱତ୍‌ଥ ଗଛ ଭିତରେ ବିବାହଘର ମଧ୍ୟ କରନ୍ତି । କେତେ ଲୋକ ଜାକଜମକରେ ଏଇ ବିବାହଘର କରନ୍ତି । ବର ଅଶ୍ୱତ୍‌ଥ ଗଛ ଛାଇ ଦେଉଥିବାରୁ ପଥଶ୍ରାନ୍ତ ଗଛପାଇଁ ଏହା ଖୁବ୍ ଉପଯୋଗୀ । ପକ୍ଷୀମାନେ ଯଦି ନ ରହନ୍ତି, ସେସବୁ ଗଛ ଲୋପ ପାଇଯିବ ।

'ହଁ, ଠିକ୍ କଥା । ପ୍ରାଣୀମାନେ ମଧ୍ୟ ପରିବେଶକୁ ରକ୍ଷା କରନ୍ତି ।

ଆରେ ଖାଲି କ'ଣ ସେତିକି, କେତେକ ପ୍ରାଣୀ ଯଦି ନ ରହନ୍ତି, ଆମ କୃଷିବାସ ହେବନି, ଗଛରେ ଫଳ ଫଳିବ ନାହିଁ । ଦୁର୍ଭିକ୍ଷ ପଡ଼ିଯିବ ।

'କେମିତି ଭାଇ ?'

ଆମ ଧାନ, ଗହମ ଗଛରେ ଯେତେବେଳେ ଫୁଲ ଫୁଟେ, ମହୁମାଛିଆଦି କୀଟପତଙ୍ଗ ଯାଇ ସେଥିରେ ପରାଗ ସଙ୍ଗମରେ ସାହାଯ୍ୟ କରନ୍ତି । ମହୁମାଛି-ମାନେ ଯଦି ନ ଥାନ୍ତେ; ଧାନ, ଗହମ ସବୁ ଅଗାଡ଼ି ହୋଇଯାନ୍ତା । ସେହିଭଳି ଭଅଁର ଓ ଅନ୍ୟାନ୍ୟ କୀଟ ନ ଥିଲେ ପିଜୁଳି, ସପେଟା ଗଛରେ ଫଳ ହୁଅନ୍ତା ନି । ତେଣୁ ଗଛର ସୁରକ୍ଷା ଓ ଫଳଦାନ ପାଇଁ ପ୍ରାଣୀମାନେ ଅନେକ ପରିମାଣରେ ଦାୟୀ । ତେଣୁ ସେମାନେ ପରିବେଶକୁ ରକ୍ଷାକରନ୍ତି ନ ତ ଆଉ କିଏ କରେ ?

'ଆଁ, ଏହି ପ୍ରାଣୀମାନେ ଆମର ଏତେ ଉପକାର କରନ୍ତି ? ମୁଁ ତ ଜାଣି ନ ଥିଲି ଭାଇ ।' ଆରେ ଆଉ ଗୋଟେ କଥା ଶୁଣ୍ । ଆମ ଭାରତବର୍ଷର ଦକ୍ଷିଣରେ ଭାରତ ମହାସାଗର ଅଛି । ସେହି ମହାସାଗର ଭିତରେ ମରିସସ୍ ବୋଲି ଗୋଟିଏ ଦ୍ୱୀପପୁଞ୍ଜ ଅଛି । ସେଠାରେ ବହୁବର୍ଷ ତଳେ କାରଭେଲିଆ ନାମକ ଖୁବ୍ ବଡ଼ବଡ଼ ଗଛ ଥିଲା । ସେଇ ଗଛର କାଠ ଖୁବ୍ ଚମତ୍କାର । ସେଠାକୁ ଯେତେବେଳେ ଇଉରୋପୀୟମାନେ ବସତି ସ୍ଥାପନ କରିବାକୁ ଗଲେ, ଏହି ଗଛକୁ କାଟି ଘରଦ୍ୱାର କଲେ ଓ ବିଦେଶରେ ବିକ୍ରୟ କଲେ । ଏମିତି କାଟି କାଟି ବଣସବୁ ସଫା ହୋଇଗଲା ।

'ତା ହେଲେ ତ ଭାରି ଅସୁବିଧା ହୋଇଥିବ ସେଠି ?'

ହଁ, ସେହି ଦ୍ୱୀପରେ ଡୋଡୋ ପକ୍ଷୀ ନାମକ ଏକ ଜାତିର ପକ୍ଷୀ ଥିଲେ । ଏହି ପକ୍ଷୀଗୁଡ଼ିକ ଆକାରରେ ବଡ଼ ହୋଇଥିବାରୁ ଭଲ ଉଡ଼ିପାରନ୍ତି ନା । ଡେଇଁ ଡେଇଁ ଯାଆନ୍ତି । ସେମାନଙ୍କ ମାଂସ ଭାରି ସୁଆଦ । ଯେଉଁ ଇଉରୋପୀୟମାନେ ମରିସସ୍ ଦ୍ୱୀପକୁ ଗଲେ, ସେମାନେ ଏହି ପକ୍ଷୀମାନଙ୍କୁ ମାରି ଖାଇଦେଲେ । ଏହି ଡୋଡୋ ପକ୍ଷୀଯୋଗୁଁ କାରଭେଲିଆ ଗଛ ଜନ୍ମ ହୁଏ । କାରଭେଲିଆ ଗଛରେ ଯେଉଁ ଫଳ ହୁଏ, ସେ ଫଳର ମଞ୍ଜିରୁ ଗଛ ହୁଏନି । ଏହି ପକ୍ଷୀ ସେ ଫଳକୁ ଖାଇ ଝାଡ଼ାରେ ମଞ୍ଜିକୁ ବାହାର କରିଦେଲେ, ମଞ୍ଜି ନରମ ହୋଇଯାଏ । ସେହି ମଞ୍ଜିରୁ ଗଛ ହୁଏ । ଇଉରୋପୀୟମାନେ ଯେତେବେଳେ ସବୁ ଡୋଡୋ ପକ୍ଷୀଙ୍କୁ ମାରି ଖାଇଦେଲେ, କାରଭେଲିଆ ଗଛ ଆଉ ହେବ କେମିତି ?

ବର୍ତ୍ତମାନ ଆଉ ସେ ଦ୍ୱୀପରେ ଡୋଡୋ ପକ୍ଷୀ ନାହାନ୍ତି । ସାରା ପୃଥିବୀରେ ଆଉ କେଉଁଠି ସେ ପକ୍ଷୀ ନାହାନ୍ତି । ବର୍ତ୍ତମାନ ସେ ଦ୍ୱୀପରେ ଆଉ ସେ ଗଛ ହେଉନି । ଆଉ ମାତ୍ର ଦୁଇ ଶହ ଅଢ଼େଇ ଶହ ଗଛ ସେ ଦ୍ୱୀପରେ ବଞ୍ଚିଛନ୍ତି । ସେମାନେ ଗଲେ, ସେ ଗଛର ବଂଶ ଲୋପ ପାଇଯିବ । ଡୋଡୋ ପକ୍ଷୀ ସେ ଦେଶର ପରିବେଶକୁ କେମିତି ସୁରକ୍ଷିତ କରି ରଖିଥିଲେ, ଶୁଣିଲୁ ତ ! ପ୍ରାଣୀମାନେ ମଧ୍ୟ ଆମ ପରିବେଶର ଅଙ୍ଗ, ସେମାନଙ୍କ ଅଭାବରୁ ମଧ୍ୟ ପରିବେଶ ନଷ୍ଟ ହୋଇଯାଏ ।

———